ISSN: 2456-9194, Vol. III, Issue. I, June 2019

# ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php



# ଓଡ଼ିଆ ଲିଙ୍ଗ ସଂରଚନା : ଏକ ବ୍ୟାକରଣଗତ ବିଶ୍ଳେଷଣ

**ବିଶ୍ୱନନ୍ଦନ ଦାଶ**

ସେଞ୍ଚୁରିଆନ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

ଇ-ମେଲ୍: bn.dash@gmail.com

***ସଂକ୍ଷିପ୍ତ ସାର:*** *ଓଡ଼ିଆ ଭାଷାରେ ଲିଙ୍ଗ ଓ ଯୌନତା ପାରସ୍ପରିକ ସମ୍ପର୍କିତ ବା ସମାର୍ଥକ ସଦୃଶବୋଲି ଅଧିକାଂଶ ଲୋକ ଗ୍ରହଣ କରିନେଇଥାନ୍ତି, କିନ୍ତୁ ବ୍ୟାକରଣର ନିୟମାନୁସାରେ ଏହା ଠିକ୍ ନୁହେଁ। ଓଡ଼ିଆ ଏକ ସ୍ୱତନ୍ତ୍ର ଓ ସମୃଦ୍ଧ ଭାଷାରୂପେ ଲୋକ ମୁଖରେ ପ୍ରଚଳିତ। ପୂର୍ବରୁ ଓଡ଼ିଆ ବ୍ୟାକରଣରେ ଲିଙ୍ଗ ପ୍ରସଙ୍ଗରେ ତିନି ପ୍ରକାର ଲିଙ୍ଗ (ପୁଂଲିଙ୍ଗ/ସ୍ତ୍ରୀଲିଙ୍ଗ/କ୍ଲୀବଲିଙ୍ଗ) ଅଛି ବୋଲି କିଛି ବୈୟାକରଣ ଯୁକ୍ତି ଦେଖାନ୍ତି। ମାତ୍ର ଏହି ଉପଲବ୍ଧି ଭାଷାବୈଜ୍ଞାନିକ ସିଦ୍ଧାନ୍ତ ନୁହେଁ। ଭାଷା ସଂରଚନା ବିଷୟରେ ଭାଷାବିଜ୍ଞାନୀମାନେ କିଛି ଆଲୋଚନା କଲେ ଉକ୍ତ ପରିସରକୁ 'ବ୍ୟାକରଣ' ଓ 'ଅଭିଧାନ' ନେଇ ସିଦ୍ଧାନ୍ତ କରିଥାନ୍ତି ।କାରଣ, ଲିଙ୍ଗ ଏକ ଚିହ୍ନଟସୂଚକ ଅର୍ଥ ରୂପେ ମୁଖ୍ୟତଃ ବିଶେଷ୍ୟର ଶ୍ରେଣୀଭୁକ୍ତ ହୋଇଥାଏ। ଯାହାର ଆଭ୍ୟନ୍ତରୀଣ ଅର୍ଥକୁ ନେଇ ବ୍ୟବହାରରେ ଔଚିତ୍ୟ ନଥାଏ।ଏପରି ବୈଷମ୍ୟକୁ ଦୃଷ୍ଟିରେ ରଖି,ଏହି ପ୍ରବନ୍ଧରେ ମୁଖ୍ୟ ପ୍ରସଙ୍ଗ– ଓଡ଼ିଆ ଲିଙ୍ଗର ଏକ ଭାଷା ତାତ୍ତ୍ୱିକ ବିଶ୍ଳେଷଣ କରାଯାଉଛି। ଏହି ପରିପ୍ରେକ୍ଷୀରେ, ପୂର୍ବ କୃତ ସନ୍ଦର୍ଭ ଗୁଡିକୁ ଏକତ୍ରିତ ସମୀକ୍ଷା କରାଯାଇଛି ଏବଂ ଦେଖାଯାଇଛି ଯେ ଲିଙ୍ଗ ପରିବର୍ତ୍ତନ କେବଳ ଆଭିଧାନ ସ୍ତରରେ ସୀମିତ, ଯାହାର ଦୈନନ୍ଦିନ କଥିତ ପରମ୍ପରାରେ କୌଣସି ପ୍ରଭାବ ନଥାଏ। ଓଡ଼ିଆ ଭାଷାଭାଷୀ ନିଜ ପ୍ରୟୋଜନ ଅନୁସାରେ ଲେଖିବା ଓ କହିବାବେଳେ ସ୍ୱତଃ ପୁଂଲିଙ୍ଗକୁ ସ୍ତ୍ରୀଲିଙ୍ଗରେ ପରିବର୍ତ୍ତନ କରି ବ୍ୟବହାର କରିଥାନ୍ତି। ଏହାଛଡା, କ୍ଲୀବଲିଙ୍ଗ ଭଳି ଲାଗୁଥିବା ଶବ୍ଦଗୁଡିକ ବାସ୍ତବରେ ପୁଂଲିଙ୍ଗ ରୂପେ ବ୍ୟବହୃତ ହୁଏ, ଏଣୁ ଓଡ଼ିଆରେ କ୍ଲୀବଲିଙ୍ଗର ବ୍ୟବହାର ନାହିଁଆଶା କରାଯାଏ, ଏପରି ଏକ ବିସ୍ତୃତ ତର୍ଜମା ଗବେଷକଙ୍କୁ ନିଶ୍ଚିତ ମାର୍ଗଦର୍ଶନ କରିବ।*

*[ଏହି ପ୍ରବନ୍ଧଟି ଏକ ପରିବର୍ଦ୍ଧିତ ଓ ପରିମାର୍ଜିତ ସଂସ୍କରଣ। ଏହା ପୂର୍ବ ପଠିତ ଇଂରାଜୀ ସନ୍ଦର୍ଭ, (Odia Gender System: A Grammatical Description) ତିତା: ୨୯ ମଇ ୨୦୧୮ ରେ ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା, ଭୁବନେଶ୍ୱର ଦ୍ବାରା ଆୟୋଜିତ ଓଡ଼ିଆ ବ୍ୟାକରଣ ଜାତୀୟ ସଙ୍ଗୋଷ୍ଠୀର ଏକ ଅଂଶ ବିଶେଷ।]*

***ସୂଚକ ଶବ୍ଦାବଳୀ (Keywords)*** *:ଲିଙ୍ଗ, ବ୍ୟାକରଣଗତ ଲିଙ୍ଗ, ପ୍ରାକୃତିକ ଲିଙ୍ଗ, ଓଡ଼ିଆ ଅଭିଧାନ,ଓଡ଼ିଆ ବ୍ୟାକରଣ*

## I. ଉପକ୍ରମ

David Ogilvy (1911-1999), ବିଶ୍ୱ ବିଜ୍ଞାପନ ଉଦ୍ୟୋଗର ଜଣେ ସର୍ବାଧିକ ସଫଳ ତଥା ଆଦୃତ ବ୍ୟକ୍ତି ଏକଦା କହିଥିଲେ, "*ମୁଁ ବ୍ୟାକରଣର ନିୟମଗୁଡିକୁ ଜାଣେ ନାହିଁ – କିନ୍ତୁ ଯଦି ତୁମେ ଲୋକଙ୍କ ଦ୍ୱାରା କିଛି କରାଇବାକୁ ଚାହୁଁଛ କିମ୍ବା କିଛି କିଣିବା ନିମନ୍ତେ ପ୍ରବର୍ତ୍ତାଇବାକୁ ଚେଷ୍ଟା କରୁଥାଅ, ତା'ହେଲେ ମୋତେ ଯାହା ଲାଗୁଛି ତୁମେ ସେମାନଙ୍କର ସେହି ଭାଷା ବ୍ୟବହାର କରିବା ଉଚିତ୍ – ଯେଉଁ ଭାଷା ସେମାନେ ପ୍ରତ୍ୟହ ବ୍ୟବହାର କରନ୍ତି, ସେହି ଭାଷା ଯେଉଁଥିରେ କି ସେମାନେ ଚିନ୍ତା କରିଥାନ୍ତି*"David Ogilvy, 1963 [ଇଂରାଜୀରୁ ଅନୂଦିତ])।

ମନର ଭାବକୁ ଅଭିବ୍ୟକ୍ତ କରିବାର ଏକ ମାଧ୍ୟମ ଅଟେ, ଭାଷା। ସେହି ଭାଷା ଯାହା ବାଚିକ, ଲିଖିତ ଓ ଆଙ୍ଗିକ ହୋଇପାରେ। ବିଶେଷ ଅର୍ଥରେ, ବାଚିକ *ଭାଷାକୁ* ହିଁ ଆମ୍ଭେମାନେ ମୁଖ୍ୟତଃ 'ଭାଷା' ବୋଲି କହିଥାଉ। "*ଭାଷ୍ୟତେ ବ୍ୟକ୍ତ ୱାଚାରୂପେଣ ଅଭିବ୍ୟଜ୍ୟତେ ଇତି ଭାଷା*' – ଏହା ସଂସ୍କୃତରେ କୁହାଯାଇଛି। ଅର୍ଥାତ୍ ଯାହା ବ୍ୟକ୍ତ ଅବା ବାକ୍ ରୂପରେ ଅଭିବ୍ୟକ୍ତ ହୁଏ, ତାହାହିଁ ଭାଷା।

ସେହିପରି, ଭାଷାପାଇଁ ବ୍ୟାକରଣର ମହତ୍ୱ ବହୁ ପ୍ରାଚୀନ କାଳରୁ ପ୍ରତିଷ୍ଠିତ। ବ୍ୟାକରଣକୁ ବେଦର ଏକ ଅଙ୍ଗ (ବେଦ+ଅଙ୍ଗ) କୁହାଯାଏ। ତେଣୁ *ବ୍ୟାକରଣର* ଅନ୍ୟନାମ 'ବେଦାଙ୍ଗ'। 'ବ୍ୟାକରଣ' ଶବ୍ଦର ଅର୍ଥ, ଭାଷାର ବିଶ୍ଳେଷଣ; "*ବ୍ୟାକ୍ରିୟତେ ବିଶ୍ଳେଷ୍ୟତେଭାଷା ଅନେନ ଇତି ବ୍ୟାକରଣମ୍*'। ଭାଷାର ତ୍ରୁଟି ସଂଶୋଧନ ତଥା ଭାଷା ବ୍ୟବହାର କରୁଥିବା ବ୍ୟକ୍ତିବିଶେଷଙ୍କର ଲିଖନ ଓ ଉଚ୍ଚାରଣ ଗତ ତ୍ରୁଟି ସଂଶୋଧନ ପାଇଁ ବ୍ୟାକରଣର ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ। ବ୍ୟାକରଣ ବ୍ୟତିରେକେ ଯେ କୌଣସି ଭାଷାର ଶୁଦ୍ଧଓ ମାର୍ଜିତ ରୂପ ବିଶ୍ଳେଷଣ ଅସମ୍ଭବ। ଅନ୍ୟ ଭାବରେ, ବ୍ୟାକରଣ ହେଉଛି ଏକ ଭାଷା ବିଶ୍ଳେଷଣାତ୍ମକ ଶାସ୍ତ୍ର। କଥିତ ଭାଷା

ଅପେକ୍ଷା ଲିଖିତ ଭାଷାର ଶୁଦ୍ଧତା ଅଧିକ ଗୁରୁତ୍ୱପୂର୍ଣ୍ଣ କରାଏ। ଏଣୁ ବ୍ୟାକରଣ ହେଉଛି ଶୁଦ୍ଧ ଭାଷା ପ୍ରୟୋଗର ଏକ 'ମୌଳିକ ନୀତିଶାସ୍ତ୍ର'। ଅବଶ୍ୟ 'ବ୍ୟାକରଣ' ଏକ ଆବଦ୍ଧ ସରୋବର ନୁହେଁ। ଏହା ଗତିଶୀଳ ସ୍ରୋତସ୍ୱିନୀ। ତେଣୁ ଏଥିରେ ପରିବର୍ତ୍ତନ ଆସିବା ସ୍ୱାଭାବିକ। ଜନସାଧାରଣଙ୍କ ଦ୍ୱାରା ଯେପରି ଭାଷା ପ୍ରୟୋଗ ହେବ ସେହିପରି ବ୍ୟାକରଣର ନିୟମରେ ପରିବର୍ତ୍ତନ ହେବା ସ୍ୱାଭାବିକ। ସୁତରାଂ, ବ୍ୟାକରଣର ପ୍ରାୟୋଗିକ କ୍ଷେତ୍ର ଯଥୋଚିତ ମୁକ୍ତ ହେବା ବାଞ୍ଛନୀୟ।

ପ୍ରାଚୀନ କାଳରେ ଓଡ଼ିଆ (ISO 639-3 [ori/ory]) ଭାଷାର ନାମ ଥିଲା 'ଔଡ୍ରଭାଷା' ବା 'ଔଡ୍ରବିଭାଷା'। ଭାଷାବିଜ୍ଞାନୀମାନେ ଏହି ଭାଷା ଭାରତରେ ୨,୫୦୦ ବର୍ଷ ପୂର୍ବରବୋଲି ପ୍ରମାଣ କରନ୍ତି (Pattanayak & Prusty, 2015)।ଏହା ଷଷ୍ଠ ଭାରତୀୟ ଭାଷା ଭାବେ ଭାରତ ସମ୍ବିଧାନର ଅଷ୍ଟମ ଅନୁଚ୍ଛେଦରେ ସୂଚିତ ଏବଂ ଭାରତୀୟ ଜନଗଣନା, ୨୦୧୧ ମସିହା ତଥ୍ୟ ଅନୁସାରେ ଓଡ଼ିଆକୁ ୩,୭୫,୨୧,୩୨୪ ଜନସାଧାରଣ କଥିତ ଭାଷା ରୁପେ ବ୍ୟବହାର କରିଥାନ୍ତି (*Census of India*, 2011, 12-15)। ବିଶ୍ୱବ୍ୟାପୀ ପ୍ରଚଳିତ ୭୧୦୬ ଭାଷା ମଧ୍ୟରେ ୩୭ତମ ସ୍ଥାନରେ ରହିଛି – ଓଡ଼ିଆ ଭାଷା, ଯାହା ଆଜି ଏକ 'ଶ୍ରେଷ୍ଠ ଭାଷା' ବା 'ଶାସ୍ତ୍ରୀୟ ଭାଷା'(Classical Language) ରୂପେ ମାନ୍ୟତା ପ୍ରାପ୍ତ। ଭାରତ ସରକାର ଏହାକୁ ଗତ ତା: ୨୦.୦୨.୨୦୧୪ରେ ସ୍ୱୀକୃତି ଦେଇ ସରକାରୀ ରାଜପତ୍ରରେ(*The Gazette of India*, dated: ୧୧.୦୩.୨୦୧୪)ବିଜ୍ଞପ୍ତି କରିସାରିଛନ୍ତି।

## II. ବ୍ୟାକରଣର ପ୍ରକାର

ଏହି ପ୍ରବନ୍ଧରେ ଓଡ଼ିଆ ଲିଙ୍ଗର ବ୍ୟାକରଣ ଗତ ବିଶ୍ଳେଷଣ କରିବା ପୂର୍ବରୁ ବ୍ୟାକରଣର ପ୍ରକାର ଭେଦ ଓ ପ୍ରୟୋଜନୀୟତା ଉପରେ ସାମାନ୍ୟ ଆଲୋଚନା କରିବା ନିତାନ୍ତ ଆବଶ୍ୟକ। ଶାସ୍ତ୍ରାନୁଯାୟୀ, ବ୍ୟାକରଣର ଅନ୍ୟନାମ 'ଶବ୍ଦାନୁଶାସନ'। ସାଧାରଣତଃ, ବ୍ୟାକରଣର ଭେଦ ଦୃଷ୍ଟିରୁ ଆଲୋଚନା କଲେ, ଏହା ମୁଖ୍ୟତଃ ଦୁଇ ପ୍ରକାରର, ଯଥା: (୧)ଔପଚାରିକ ବ୍ୟାକରଣ (Formal Grammar) ଏବଂ (୨)ବ୍ୟାବହାରିକ ବା ଅଭିବ୍ୟକ୍ତ ଶୀଳ ବ୍ୟାକରଣ (Functional/Communicative Grammar)। ମାତ୍ର ପରବର୍ତ୍ତି ସମୟରେ, ଆଧୁନିକ ଭାଷାବିଜ୍ଞାନୀମାନେ ବିଭିନ୍ନ ଭାଷାର ଅନେକ ଗୁଡିଏ ଜଟିଳ ଦିଗକୁ ଅନୁଧ୍ୟାନ କରି ବ୍ୟାକରଣର କିଛି ବିଶେଷ ପ୍ରକାରର ପାର୍ଥକ୍ୟ ଦର୍ଶାଇଛନ୍ତି। ସେଗୁଡିକ ହେଲା: (୧) ସଂରଚନାତ୍ମକ ବ୍ୟାକରଣ (Structural Grammar) ଏବଂ (୨) ରୂପାନ୍ତରକ ଉତ୍ପାଦକୀୟ ବ୍ୟାକରଣ (Transformational Generative Grammar)।

## III. ଭାଷାରେ ଲିଙ୍ଗ ସମ୍ପର୍କୀୟ ଅବବୋଧ

ସାଧାରଣତଃ ଭାଷାବିଜ୍ଞାନୀମାନେ, ଭାଷା ସଂରଚନା ବିଷୟରେ କିଛି ଆଲୋଚନା କଲେ 'ବ୍ୟାକରଣ' ଓ 'ଅଭିଧାନ' ଅନ୍ତର୍ଭୁକ୍ତ କରିଥାନ୍ତି। କାରଣ ଆମେ ଯେତେବେଳେ ଭାଷାର ଆଭିଧାନିକ ବ୍ୟବହାର ସମ୍ପର୍କରେ ଚର୍ଚ୍ଚା କରୁ, ସେତେବେଳେ ଆମେ ଭାଷାର ଆଭ୍ୟନ୍ତରୀଣ ଅର୍ଥ ପୂର୍ଣ୍ଣପ୍ରକାର, ଭିର୍ଣ୍ଣରୂପ, ଉସ୍ର ଓ ଉଚ୍ଚାରଣ ଆଦି ବୁଝାଉଥିବା ଅର୍ଥ ଗଠନ ସମ୍ପର୍କରେ ବର୍ଣ୍ଣନା ମଧ୍ୟ କରିଥାଉ।

ପ୍ରାୟତଃ, ଅଧିକାଂଶ ଲୋକଙ୍କଦ୍ୱାରା ବହୁ ସମୟରେ ଲିଙ୍ଗ (Gender) ଓ ଯୌନତା (Sex) କୁ ପାରସ୍ପରିକ ସମ୍ପର୍କିତ ଶବ୍ଦ ମନେକରି ସମାର୍ଥକ ଶବ୍ଦ ରୂପେ ବିଚାର କରିଥାନ୍ତି, ମାତ୍ର ଏହି ଅବବୋଧ ଠିକ୍ ନୁହେଁ। ଲିଙ୍ଗଓ ଯୌନତା ମଧ୍ୟରେ ପ୍ରଭେଦ ଏହା ଯେ, 'ଲିଙ୍ଗ'ର ଭେଦଭାବ ସାଧାରଣତଃ ସେଇଠି ବିବେଚନା କରାଯାଏ ଯେଉଁଠି ସମାଜରେ କୌଣସି ବ୍ୟକ୍ତିର ଭିନ୍ନତାକୁ ସ୍ତ୍ରୀ ଓ ପୁରୁଷ ମାଧ୍ୟମରେ ପରିଚିତ କରାଏ। କିନ୍ତୁ 'ଯୌନତା' ପ୍ରତ୍ୟେକ ସଜୀବ ଶକ୍ତିର ଏକ ଜୈବିକ ଆବଶ୍ୟକତାକୁ ଓ ଶାରୀରିକ ବିଲକ୍ଷଣକୁ ସୂଚାଇଥାଏ (ବିସ୍ତୃତ ଜାଣିବା ପାଇଁପଢନ୍ତୁ – Milton Diamond, 2000: 46-47)।

ଶାସ୍ତ୍ରୀୟ ଭାରୋ-ୟୁରୋପୀୟ (Classical Indo-European) ମତ ଅନୁଯାଇ, ଭାଷାରେ ତିନି ପ୍ରକାର ଲିଙ୍ଗ (ପୁଂଲିଙ୍ଗ/ସ୍ତ୍ରୀଲିଙ୍ଗ/କ୍ଲୀବଲିଙ୍ଗ) ତଥ୍ୟ ଉପରେ ପର୍ଯ୍ୟବେସିତ। ଲିଙ୍ଗ ଏକ ଚିହ୍ନଟସୂଚକ ଅର୍ଥ ରୂପେ ବିଶେଷ୍ୟର ଶ୍ରେଣୀଭୁକ୍ତ ହୁଅନ୍ତି। ଲିଙ୍ଗର ବ୍ୟାକରଣଗତ ଭିନ୍ନତା ମଧ୍ୟ ରହିଥାଏ, ଯେଉଁଥିରେ ବିଶେଷ୍ୟ ଏବଂ ସର୍ବନାମ ପୁଂଲିଙ୍ଗ ବା ସ୍ତ୍ରୀଲିଙ୍ଗ ରୂପେ ଶ୍ରେଣୀଭୁକ୍ତ ଏବଂ ଯାହା ପ୍ରାୟ ଅନେକ ଭାଷାରେ ଉପଲବ୍ଧ ହୋଇଥାନ୍ତି (Frank Palmer, 1971: 263-265; Greville Corbett, 1991 [ଇଂରାଜୀରୁ ପରିମାର୍ଜିତ])।

Robert Henry Robinsଙ୍କ ମତରେ, ଅନେକ କ୍ଷେତ୍ରରେ, ଲିଙ୍ଗଗତ ବ୍ୟବସ୍ଥାରେ କିଛି ମୂଳ ସ୍ଥିତି ସ୍ଥାପକ ଉପାଦାନ ରହିଥାଏ – ଯାହା ଯୌନଗତ ଜାନ୍ତବତା, ଆକାର, ପ୍ରକାର, ଗୁଣ, ଅବସ୍ଥା ବାଚକ ଓ ଅବଧାରଣାର ପରିମାଣ ଆଦି ଗୁଣ ବିଶେଷତା ସବୁ ଦର୍ଶାଇଥାଏ (1964: 263-265 [ଇଂରାଜୀରୁ ପରିମାର୍ଜିତ])। ଠିକ୍ ସେତିକିବେଳେ, ସେଥିରେ ଭିନ୍ନତା ମଧ୍ୟ ରହିଥାଏ। ଉଦାହରଣତଃ, ହିନ୍ଦୀ ଶବ୍ଦ *'ନାକ୍'* /nāk/, *'ଥୋଡ଼ି'*/thodi/, *'ଜିଭ୍'* /jibh/, *'ଉଙ୍ଗୁଲି'*/uŋgli/ ଆଦି ଶବ୍ଦଗୁଡିକ କାହିଁକି ସ୍ତ୍ରୀଲିଙ୍ଗ ଏବଂ ସେହିପରି, *'କାନ୍'* /kān/, *'ମୁହଁ'*/muñh/ ଓ *'ଶର୍'*/ʃɔr/ ଆଦି କାହିଁକି ପୁଂଲିଙ୍ଗ କୁହାଯାଇଥାଏ, ତା'ହା ଅଳ୍ପରେ ଏଠାରେ ବୁଝାଇବା ଅତ୍ୟନ୍ତ କଷ୍ଟକର କଥା। ତେଣୁ ଯୁକ୍ତ (+) ପୁଂଲିଙ୍ଗ ଏବଂ ବିଯୁକ୍ତ (-)ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଏବଂ କ୍ଲୀବଲିଙ୍ଗର ମୌଳିକ ବୈଶିଷ୍ଟ୍ୟ ଅଟନ୍ତି ଏବଂ ତାହା ବ୍ୟାକରଣଗତ ବୈଶିଷ୍ଟ୍ୟ ରୂପେ ଆଲୋଚିତ ହୁଅନ୍ତି।

## IV. ଓଡ଼ିଆରେ ଲିଙ୍ଗ ପ୍ରସଙ୍ଗ

ବିଭିନ୍ନ ଓଡ଼ିଆ ବୈୟାକରଣ ସଂସ୍କୃତ ନିୟମକୁ ଅନୁକରଣ କରି ଓଡ଼ିଆ ବ୍ୟାକରଣରେ ଲିଙ୍ଗ ପ୍ରସଙ୍ଗରେ ତିନି ପ୍ରକାର ଲିଙ୍ଗ (ପୁଂଲିଙ୍ଗ/ସ୍ତ୍ରୀଲିଙ୍ଗ/କ୍ଲୀବଲିଙ୍ଗ) ଅଛି ବୋଲି ଅନେକ ତୁଳନାତ୍ମକ ଯୁକ୍ତି ଦେଖାନ୍ତି (ଦ୍ରଷ୍ଟବ୍ୟ: ଗୋପାଳଚନ୍ଦ୍ର ପ୍ରହରାଜ, ୧୯୧୩; ଗୋପୀନାଥ ନନ୍ଦଶର୍ମା, ୧୯୨୭[୧୯୯୫]; ନୀଳକଣ୍ଠ ଦାସ, ୧୯୩୫: ୨୯-୩୩)।

ଓଡ଼ିଆ ଭାଷାରେ କିନ୍ତୁ ଏହି ଧାରଣାର ଭାଷାବୈଜ୍ଞାନିକ ସିଦ୍ଧାନ୍ତ ସ୍ୱୀକୃତ ହୁଏନାହିଁ। ଓଡ଼ିଆରେ ପ୍ରାକୃତିକ ଲିଙ୍ଗ (natural gender) ଧାରଣାରେ କେବଳ ପୁଂଲିଙ୍ଗ ଏବଂ ସ୍ତ୍ରୀଲିଙ୍ଗ ମଧ୍ୟରେ ପୃଥକୀକରଣ ହୋଇଥାଏ। ବିଶେଷ୍ୟରେ ଲିଙ୍ଗ ସମ୍ପର୍କିତ ରୂପର ପରିମାଣ ସର୍ବନାମ ଏବଂ କ୍ରିୟା ସଂଯୋଗ ପାଇଁ ନାହିଁ। କାରଣ ଭାଷାତତ୍ତ୍ୱ ଦିଗରୁ ଆଲୋଚନା କଲେ ଓଡ଼ିଆ ଏକ ସମୃଦ୍ଧ ଭାଷା (inflectionally rich language) ରୂପେ ଲୋକମୁଖରେ ପ୍ରଚଳିତ। ଯେକୌଣସି ବ୍ୟକ୍ତି ଯାହାଙ୍କୁ ଲିଙ୍ଗ ସମ୍ପର୍କରେ କିଛି ପ୍ରଶ୍ନ କରାଯାଏ ତାହା ସର୍ବନାମ, ଅଧିକୃତ ବିଶେଷଣ ଏବଂ ଲିଙ୍ଗଗତ ବିଶେଷ୍ୟକୁ ହିଁ ବୁଝାଇଥାଏ, ଉଦାହରଣ ସ୍ୱରୂପ: *ପୁରୁଷ/ସ୍ତ୍ରୀ, ପରିଚାରକ/ପରିଚାରିକା, ସଭାପତି/ସଭାନେତ୍ରୀ,* ଇତ୍ୟାଦି। ଏହା ବ୍ୟକ୍ତିର ସର୍ବଶେଷ କଥିତ ସ୍ୱ ଚିହ୍ନଟ ଲିଙ୍ଗକୁ ହିଁ ସୂଚାଇଥାଏ। ଏହା ସେହି ବ୍ୟକ୍ତିଙ୍କ ଜୀବନର ଯେକୌଣସି ଅବସ୍ଥାରେ ପ୍ରୟୋଗ କରାଯାଇପାରେ ଯଦି ସେ ଜଣଙ୍କ ଅନ୍ୟପକ୍ଷେ ନିର୍ଦ୍ଦିଷ୍ଟ ଭାବରେ ସୂଚିତ ହୋଇ ନଥାନ୍ତି (John Lyons, 1968: 284 – ଉଦ୍ଧୃତ ଦ୍ରଷ୍ଟବ୍ୟ B. N. Dash, 2014 [ଇଂରାଜୀରୁ ପରିମାର୍ଜିତ])।



ଓଡ଼ିଆଭାଷାରେ ବ୍ୟାକରଣ ଗତ ଲିଙ୍ଗ (grammatical gender) ନାହିଁ। କାରଣ ଏଠି କର୍ତ୍ତା ଏବଂ କ୍ରିୟା ମଧ୍ୟରେ କୌଣସି ବୁଝାମଣା ବା ପରିବର୍ତ୍ତନ ହୋଇନଥାଏ (ଦ୍ରଷ୍ଟବ୍ୟ: Tapas S. Ray, 2007[ଇଂରାଜୀରୁ ପରିମାର୍ଜିତ])। କିନ୍ତୁ,ଏହା ହିନ୍ଦୀ ଭାଷାରେ ସମ୍ପୂର୍ଣ୍ଣ ବ୍ୟବହାର ହୋଇଥାଏ। ହିନ୍ଦୀ ବିଶେଷ୍ୟ ଏକ ବ୍ୟାକରଣ ଗତ ଲିଙ୍ଗର ଅନ୍ତର୍ଭୁକ୍ତ, ଯଥା: ପୁଂଲିଙ୍ଗ କିମ୍ବା ସ୍ତ୍ରୀଲିଙ୍ଗ। ଏହି ଦୁଇ ଲିଙ୍ଗଗତ ଭିନ୍ନତା ଶାରୀରିକ ଶ୍ରେଣୀ ଅନ୍ତର୍ଭୁକ୍ତ ଲିଙ୍ଗ ସହିତ ଏବଂ ବ୍ୟାକରଣ ଗତ ଲିଙ୍ଗ ଭିତରେ ସମ୍ପୃକ୍ତି ହୋଇଥାନ୍ତି,ସେତେବେଳେ ଏହା ମଧ୍ୟରେ ପଦଗତ ଐକ୍ୟ ହୋଇ ବାକ୍ୟ ଗଠିତ ହୋଇଥାଏ। ଏହାର ଉଦାହରଣକୁ ସାରଣୀ 1ରେ ଲକ୍ଷ୍ୟ କରନ୍ତୁ:

| ହିନ୍ଦୀ | ଓଡ଼ିଆ |
|---|---|
| ବେଟା ଯାରହା ହୈ।<br>/betājārɔhāheɔi/ | ପୁଅ ଯାଉଛି।<br>/puɔjāuchi/ |
| ବେଟି ଯାରହି ହୈ।<br>/betījārɔhi heɔi/ | ଝିଅ ଯାଉଛି।<br>/jhiɔjāuchi/ |
| ଗାଡ଼ି ଯାତି ହୈ।<br>/gādijātiheɔi/ | ଗାଡି ଯାଉଛି।<br>/gādijāuchi/ |
| ଟ୍ରେନ ଯାତି ହୈ।<br>/trenjātiheɔi/ | ଟ୍ରେନ ଯାଉଛି।<br>/trenjāuchi/ |

ସାରଣୀ 2.1

ସାରଣୀ 1: ହିନ୍ଦୀ ଓ ଓଡ଼ିଆ ବାକ୍ୟରେ ଲିଙ୍ଗଗତ ବୁଝାମଣା

ସରଳ ଭାଷାରେ ଉପରୋକ୍ତ ସୂଚୀରୁ ଏହା ସ୍ପଷ୍ଟ ହେଉଛି ଯେ ହିନ୍ଦୀ ବାକ୍ୟ ଗଠନରେ ଲିଙ୍ଗର କର୍ତ୍ତା ଏବଂ କ୍ରିୟା ମଧ୍ୟରେ ସମ୍ପୂର୍ଣ୍ଣ ବୁଝାମଣା ଥାଏ। ଯଦ୍ୱାରା କର୍ତ୍ତା ଯଦି ପୁଂଲିଙ୍ଗ ରହେ କ୍ରିୟା ମଧ୍ୟ ପୁଂଲିଙ୍ଗ ରୂପ ନିଏ। ଅନୁରୂପଭାବେ, କର୍ତ୍ତା ଯଦି ସ୍ତ୍ରୀଲିଙ୍ଗ ରହେ କ୍ରିୟା ମଧ୍ୟ ସ୍ତ୍ରୀଲିଙ୍ଗ ହୋଇଯାଏ। ଯାହାକି ତୁଳନାତ୍ମକ ଭାବେ, ଓଡ଼ିଆ ଭାଷାରେ କଦାପି ବ୍ୟବହାର ହୁଏନାହିଁ କିମ୍ବା ପ୍ରଭାବ ଉପଲକ୍ଷିତ ହୁଏନାହିଁ।

## V. ବ୍ୟାକରଣ ନିୟମରେ ଓଡ଼ିଆ ଲିଙ୍ଗ

ଓଡ଼ିଆରେ ସ୍ତ୍ରୀଲିଙ୍ଗ ଶବ୍ଦଗୁଡିକ ସଂପୂର୍ଣ୍ଣ ଅଲଗା ରୂପରେ ତାହାର ଅନୁରୂପ ପୁଂଲିଙ୍ଗଶବ୍ଦ ପରି ବ୍ୟବହୃତ ହୋଇଥାନ୍ତି। ଲିଙ୍ଗ ମୂଳତଃ ବିଶେଷ୍ୟ ପଦର ଅର୍ଥକୁ ନେଇ ଏକ ଶ୍ରେଣୀଗତ ରୂପର ଜଣେ ପୁରୁଷ ସଦସ୍ୟ ଏବଂ ନାରୀ ସଦସ୍ୟ ମଧ୍ୟରେ ପାର୍ଥକ୍ୟ ପାଇଁ ବ୍ୟବହୃତ ହୋଇଥାଏ। ଯାହାକି କେବଳ ଓଡ଼ିଆ ଅଭିଧାନରେ ଆମେ ଦେଖିବାକୁ ପାଇଥାଉ ଏବଂ ତାହା କୌଣସି ମୁଖ୍ୟ ଶବ୍ଦ ପରେ ସୂଚିତ ହୋଇଥାନ୍ତି (ପୁଂ)/(ସ୍ତ୍ରୀ), କିନ୍ତୁ ଏହା କେବଳ ପ୍ରାଣୀବାଚକ ନାମ କ୍ଷେତ୍ରରେ ବା ଜନ୍ତୁ ବୋଧକ ଶବ୍ଦରେ ବ୍ୟବହୃତ (ନୀଳକଣ୍ଠ ଦାସ, ୧୯୩୫: ୩୦-୩୪) । ନିମ୍ନଲିଖିତ ଉଦାହରଣ ଗୁଡିକରେ ଲିଙ୍ଗକୁ ଭିନ୍ନ ଉପାୟରେ ଏବଂ ଭିନ୍ନ ସ୍ଥାନରେ ସେମାନଙ୍କ ବ୍ୟବହାର ଦର୍ଶାଇବା ପାଇଁ ବ୍ୟବହାର କରାଯାଇଥାଏ, (ଯଥା: *ବିଦ୍ୟାର୍ଥୀ/ଶିଶୁ/ମଣିଷ/ସଭାପତି*) ଇତ୍ୟାଦି। ଯାହାକୁ ନିମ୍ନ ଚାରୋଟି ନିୟମରେ ବିଶ୍ଳେଷଣ କରାଯାଇପାରେ, ସେଗୁଡିକ ହେଲା:

୧) ପୁଂଲିଙ୍ଗ ଶବ୍ଦରେ ଭିନ୍ନ-ଭିନ୍ନ ପ୍ରତ୍ୟୟ (~ କାର ଚିହ୍ନ) ଯୋଗ ଦ୍ୱାରା।

୨) ପୁଂଲିଙ୍ଗ ଶବ୍ଦଭିନ୍ନ ଶବ୍ଦର ବ୍ୟବହାର ଦ୍ୱାରା।

୩) ପୁଂଲିଙ୍ଗ ଶବ୍ଦର ପୂର୍ବେ ବା ପରେ ସ୍ତ୍ରୀଲିଙ୍ଗବାଚକଶବ୍ଦ ଯୋଗ କରିବା ଦ୍ୱାରା।

୪) ସ୍ୱତନ୍ତ୍ର ଏବଂ ସ୍ୱାଭାବିକ ନିୟମରେ ସ୍ତ୍ରୀଲିଙ୍ଗ।

### 5.1. ରୂପତତ୍ତ୍ୱ> ସୂଚକ > ଲିଙ୍ଗ

ଓଡ଼ିଆ ରୂପତତ୍ତ୍ୱ ସଂରଚନା ଅନୁଯାୟୀ, ଲିଙ୍ଗର ଏକ ବାହ୍ୟ ରୂପଗତ ସୂଚକ ସର୍ତ୍ତ ଥାଏ, ଯାହା ପ୍ରାକୃତିକ ଲିଙ୍ଗକୁ (natural gender) ଅନୁସରଣ କରି ବିଶେଷ୍ୟ ଶବ୍ଦର ବିଶେଷଣ ରୂପରେ ଏକ ପ୍ରତ୍ୟୟ ଚିହ୍ନ ଯୁକ୍ତ ହୋଇ ଗଠିତ ବା ବ୍ୟବହୃତ ହୋଇଥାଏ। ସ୍ତ୍ରୀଲିଙ୍ଗ ବିଶେଷ୍ୟ ଏବଂ ବିଶେଷଣ ଶବ୍ଦଗୁଡିକ ପୁଂଲିଙ୍ଗ ଶବ୍ଦାନ୍ତରେ *[-ଆ], [-ଈ], [-ଣୀ], [ଆଣୀ ~ ଆନୀ], [-ଉଣୀ], [-ଇଆଣୀ], [-ଇନ୍, ~ଇନୀ, ~ଇଣୀ], [-ଉଲି]* ଆଦି ଗୋଟିଏ କରି ପ୍ରତ୍ୟୟ (~କାର ଚିହ୍ନ) (suffix marker) ଯୋଗ ହୋଇ ନିଷ୍ପନ୍ନ ହୋଇଥାନ୍ତି ବା ବ୍ୟବହାର କରାଯାଇ ଥାଏ। ଏହାକୁ ସାରଣୀ 2.1 ରୁ ସାରଣୀ 2.4 ର ଉଦାହରଣଗୁଡିକରେ ଦେଖାଯାଇଛି।

| ପୁଂଲିଙ୍ଗ | *[-ଆ]*ଯୁକ୍ତ ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | *[-ଈ]* ଯୁକ୍ତ ସ୍ତ୍ରୀଲିଙ୍ଗ |
|---|---|---|---|
| ସଦସ୍ୟ | ସଦସ୍ୟା | ସୁନ୍ଦର | ସୁନ୍ଦରୀ |
| ସରଳ | ସରଳା | କୁମାର | କୁମାରୀ |
| ଦୁଷ୍ଟ | ଦୁଷ୍ଟା | ଦେବ | ଦେବୀ |
| ଗାୟକ | ଗାୟିକା | ନେତା | ନେତ୍ରୀ |
| କୃପଣ | କୃପଣା | ଶ୍ରୀମାନ୍ | ଶ୍ରୀମତୀ |

ସାରଣୀ 2.2

| ପୁଂଲିଙ୍ଗ | *[-ଣୀ]* ଯୁକ୍ତ ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | *[-ଆଣୀ~ ଆନୀ]* ଯୁକ୍ତସ୍ତ୍ରୀଲିଙ୍ଗ |
|---|---|---|---|
| ବ୍ରାହ୍ମଣ | ବ୍ରାହ୍ମଣୀ | କଟକିଆ | କଟକିଆଣୀ |
| ଧୋବା | ଧୋବଣୀ | ଇନ୍ଦ୍ର | ଇନ୍ଦ୍ରାଣୀ |
| ବାୟା | ବାୟାଣୀ | ସାଆନ୍ତ | ସାଆନ୍ତାଣୀ |
| ଚୋର | ଚୋରଣୀ | ତେଲି | ତେଲିଆଣୀ |
| ଗୃହୀ | ଗୃହିଣୀ | ଶିବ | ଶିବାନୀ |

ସାରଣୀ 2.3

| ପୁଂଲିଙ୍ଗ | *[-ଉଣୀ]* ଯୁକ୍ତ ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | *[-ଇଆଣୀ]*ଯୁକ୍ତ ସ୍ତ୍ରୀଲିଙ୍ଗ |
|---|---|---|---|
| ବାଘ | ବାଘୁଣୀ | ଜମିଦାର | ଜମିଦାରିଆଣୀ |
| ନାତି | ନାତୁଣୀ | ପଣ୍ଡିତ | ପଣ୍ଡିତିଆଣୀ |
| ଭିକାରୀ | ଭିକାରୁଣୀ | ମାଲିକ | ମାଲିକିଆଣୀ |
| ଗଉଡ଼ | ଗଉଡୁଣୀ | ଓକିଲ | ଓକିଲିଆଣୀ |
| ଭଣ୍ଡାରି | ଭଣ୍ଡାରୁଣୀ | ଚାକିରିଆ | ଚାକିରିଆଣୀ |

ସାରଣୀ 2.4

| ପୁଂଲିଙ୍ଗ | *[-ଇନୀ~ ଇଣୀ]* ଯୁକ୍ତସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | *[-ଉଲି ~ଉଲୀ]*ଯୁକ୍ତ ସ୍ତ୍ରୀଲିଙ୍ଗ |
|---|---|---|---|
| ଗୁଣୀ | ଗୁଣିନୀ | ବଗ | ବଗୁଲି~ ବଗୁଲୀ |
| ମାନୀ | ମାନିନୀ | ବେଙ୍ଗ | ବେଙ୍ଗୁଲୀ |
| ଗର୍ବୀ | ଗର୍ବିଣୀ | ଅଲିଅଳ | ଅଲିଅଳୀ |

### 5.2. ଅଭିଧାନିତ> ସୂଚକ > ଲିଙ୍ଗ

ଓଡ଼ିଆ ଅଭିଧାନରେ ଅନେକ ମାନବ-ସମ୍ପର୍କିତ ବା କୁଟୁମ୍ବାଦି (kinship terms) ଏବଂ କିଛି ପଶୁ ଜାତୀୟ ଶବ୍ଦର ଲିଙ୍ଗଭିନ୍ନ ରୂପରେ ଉଦ୍ଧୃତି ହୋଇଥାଏ। ଯାହାକି ପୁଂଲିଙ୍ଗ ଶବ୍ଦର ସୂଚକ ବିକଳ୍ପ ସ୍ତ୍ରୀଲିଙ୍ଗ ରୂପ ଭାବେ ସାଧାରଣ କଥାବାର୍ତ୍ତାରେ ବ୍ୟବହାର ହୋଇଥାଏ। ଉଦାହରଣ ସ୍ୱରୂପ :

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ଶ୍ୱଶୁର | ଶାଶୁ | ଅଜା | ଆଈ |
| ସ୍ୱାମୀ | ସ୍ତ୍ରୀ | ବାପା | ମା’ |
| ପିତା | ମାତା | ନନା | ବୋଉ |
| ପୁଅ | ଝିଅ | ପୁଅ | ବୋହୂ |

| | | | |
|---|---|---|---|
| ଭାଇ | ଭଉଣୀ | ଭାଇ | ଭାଉଜ |
| ରାଜା | ରାଣୀ | ପୁରୁଷ | ସ୍ତ୍ରୀ |
| ଦିଅର | ଯା' | ବର | କନ୍ୟା |
| କକେଇ | ଖୁଡୀ | ମାମୁଁ | ମାଇଁ |
| ଅଣ୍ଡିରା | ମାଈ | ଷଣ୍ଢ/ବଳଦ | ଗାଈ |

ସେହିପରି ଅନୁରୂପ ବିକଳ୍ପରେ, କେତେକ ମାନବ-ସମ୍ପର୍କିତ ବା କୁଟୁମ୍ବାଦି(kinship terms) ପୁଂଲିଙ୍ଗ ଶବ୍ଦ ମଧ୍ୟ ସ୍ତ୍ରୀଲିଙ୍ଗ ଶବ୍ଦର ସୂଚକ ହୋଇ ଓଡ଼ିଆ ଅଭିଧାନରେ ସ୍ଥାନିତ ହୋଇଥାଏ। ଏଗୁଡିକ ସ୍ତ୍ରୀଲିଙ୍ଗର ବିକଳ୍ପ ଶବ୍ଦ ଭାବେ ଲୋକେ କଥାବାର୍ତ୍ତାରେ ହୋଇଥାନ୍ତି। ଉଦାହରଣ ସ୍ୱରୂପ :

| ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ |
|---|---|---|---|
| ଭଉଣୀ | ଭିଣେଇ | ଝିଅ | ଜୋଇଁ~ ଜ୍ୱାଇଁ |
| ନଣନ୍ଦ | ନଣନ୍ଦେଇ | ଭାଣେଜୀ | ଭାଣେଜୀଜୋଇଁ |
| ଶାଳୀ | ଶଢୁ | ଝିଆରୀ | ଝିଆରୀ ଜୋଇଁ |

କେତେକ ବିଶେଷ କ୍ଷେତ୍ରରେ, କେବଳ ସ୍ତ୍ରୀ-ବାଚକ ଶବ୍ଦ ଗୁଡିକ ସ୍ୱଭାବତଃ ସ୍ତ୍ରୀଲିଙ୍ଗ ରହିଥାଏ, ଯାହାର କୌଣସି ପୁଂଲିଙ୍ଗ ଶବ୍ଦ ନାହିଁ। ସେଗୁଡିକ ଯଥା :

| ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ |
|---|---|---|---|---|---|
| ବାଂଝ | --- | ପୋଇଲି | --- | ଦାରୀ | --- |
| ରାଣ୍ଡ | --- | ଧାଈ | --- | ବେଶ୍ୟା | --- |
| ଦାରୀ | --- | ଘରଣୀ | --- | ସଉତୁଣୀ | --- |

ଏହାଛଡା, ଆଉ କେତେକ ନାମ ବାଚକ ବିଶେଷ୍ୟ ପଦର ସ୍ତ୍ରୀଲିଙ୍ଗ ରୂପ ଅବିକଳ ସମାନ ଭାବେ ବ୍ୟବହାର ହୋଇଥାଏ ଯାହାର ପୁଂଲିଙ୍ଗ ନଥାଏ। ତେଣୁ ତାହାକୁ ସ୍ୱାଭାବିକ ସ୍ତ୍ରୀଲିଙ୍ଗ କୁହାଯାଏ। ସେଗୁଡିକ ଯଥା:

| | | | | | |
|---|---|---|---|---|---|
| ଲତା | ଶୋଭା | କ୍ଷମା | ଆଶା | ତୃପ୍ତି | ଆଦ୍ୟା |
| ପ୍ରଭା | ଆଭା | ବିଭା | ନଦୀ | ଝରଣା | ସ୍ନେହା |
| କାବେରୀ | ସରସ୍ୱତୀ | ବୀଣା | ଭକ୍ତି | ଭୂମି | ଯମୁନା |
| କବିତା | ଦେବୀ | ବନାନୀ | ଲକ୍ଷ୍ମୀ | ଶାଶ୍ୱତୀ | ଜ୍ୟୋସ୍ନା |

ଏହାଛଡା, ତଳ ଲିଖିତ ଉଦାହରଣ ଗୁଡିକରେକେତେକବିଶେଷଣ ଶବ୍ଦର ଲିଙ୍ଗ ପରିବର୍ତ୍ତନ ଓଡ଼ିଆରେ ହୋଇଥାଏ।

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| କଣା | କାଣୀ | ଗୋରା | ଗୋରୀ |
| କଳା | କାଳୀ | କାଳ | କାଳୁଣୀ |
| ଛୋଟା | ଛୋଟୀ | ବୁଢା | ବୁଢୀ |
| ଅନ୍ଧ | ଅନ୍ଧୁଣୀ | ସୁନ୍ଦର | ସୁନ୍ଦରୀ |

ଆମେ ଆଗରୁ ଜାଣିଛୁ ଯେ, ଲିଙ୍ଗ ସାଧାରଣତଃ ପୁରୁଷ ଏବଂ ସ୍ତ୍ରୀ ମଧ୍ୟରେ ପାର୍ଥକ୍ୟ ଦର୍ଶାଇବା ପାଇଁ ବ୍ୟବହୃତ ହୋଇଥାଏ। ବେଳେବେଳେ, ଏହା ପୁଂଲିଙ୍ଗ ଏବଂ ସ୍ତ୍ରୀଲିଙ୍ଗ ବୋଲି ସୂଚିତ ହୁଏ। ଉଦାହରଣ ସ୍ୱରୂପ, ଇଂରାଜୀ ବାକ୍ୟକୁ ଓଡ଼ିଆରେ ଅନୁବାଦ କଲେ – My son and daughter are students. [~*"ମୋ ପୁଅ ଏବଂ ଝିଅ ବିଦ୍ୟାର୍ଥୀ ଅଟନ୍ତି"*]। ଏଠାରେ *'ପୁଅ'* (son) ପୁଂଲିଙ୍ଗ ହେଲାବେଳେ *'ଝିଅ'*(daughter) ସ୍ତ୍ରୀଲିଙ୍ଗ ସୂଚିତ ହୁଏ। ଆଉ କେତେକ ବାକ୍ୟରେ ଲିଙ୍ଗକୁ ବିଶେଷ୍ୟ ସହିତ ବିଭିନ୍ନ କେତେକ ଗୁଣ ଓ ଅବସ୍ଥା ବାଚକ ବିଶେଷଣ ଭାବେ ବ୍ୟବହାର ହେବାର ଦେଖାଯାଏ। ସେଗୁଡିକ ନିମ୍ନରେ ଦର୍ଶାଇ ଦିଆଯାଇଛି।

| ଇଂରାଜୀ ବାକ୍ୟ | ଓଡ଼ିଆ ବାକ୍ୟ | ବ୍ୟାକରଣସଂରଚନା |
|---|---|---|
| My son is a student. | ମୋ *ପୁଅ* ଜଣେ *ଛାତ୍ର*। | *ପୁଅ* (ପୁଂଲିଙ୍ଗ + ବିଶେଷ୍ୟ) |
| Her daughter is a student. | ତାଙ୍କ *ଝିଅ* ଜଣେ *ଛାତ୍ରୀ*। | *ଝିଅ* (ସ୍ତ୍ରୀଲିଙ୍ଗ + ବିଶେଷ୍ୟ) |
| He has a tall brother. | ତା'ର ଜଣେ *ଡେଙ୍ଗା ଭାଇ* ଅଛନ୍ତି। | *ଡେଙ୍ଗା ଭାଇ* (ବିଶେଷଣ + ପୁଂଲିଙ୍ଗ) |
| I have a tall sister. | ମୋର ଜଣେ *ଡେଙ୍ଗୀ ଭଉଣୀ* ଅଛନ୍ତି। | *ଡେଙ୍ଗୀ ଭଉଣୀ* (ବିଶେଷଣ + ସ୍ତ୍ରୀଲିଙ୍ଗ) |
| His brother is young. | ତା'ର *ଭାଇ ଯୁବକ* ଅଟେ। | *ଭାଇ ଯୁବକ* (ପୁଂଲିଙ୍ଗ + ବିଶେଷଣ) |
| My sister is young. | ମୋର *ଭଉଣୀ ଯୁବତୀ* ଅଟେ। | *ଭଉଣୀ ଯୁବତୀ* (ସ୍ତ୍ରୀଲିଙ୍ଗ + ବିଶେଷଣ) |

### 5.3. ଅର୍ଥତତ୍ତ୍ୱ> ସୂଚକ > ଲିଙ୍ଗ

ମୌଳିକ ଭାବେ, ଅର୍ଥଗତ (Semantically) ବା ଧ୍ୱନିଗତ (Phonologically) ଦୃଷ୍ଟିରୁ କିଛି ଶବ୍ଦର ଲିଙ୍ଗ ସଂରଚନା ଏକ କଷ୍ଟକର ବ୍ୟାପାର। ପଦଗତ/ଧ୍ୱନିଗତ ଭାବେ, କିଛି ପ୍ରାଣୀ ବାଚକ କ୍ଷେତ୍ରରେ ବା ଜନ୍ତୁ ବୋଧକମୂଳ ଶବ୍ଦ ସହିତ ପ୍ରତ୍ୟୟ ଯୋଗ କରାଯାଇ ପାରେନାହିଁ ବରଂ ସ୍ୱତନ୍ତ୍ର ଲିଙ୍ଗ ନିର୍ଦ୍ଦେଶକାରୀ ଶବ୍ଦଭାବେ ମୂଳଶବ୍ଦ ପୂର୍ବରେ ଏକବିଶେଷ୍ୟ ବା ବିଶେଷଣ ଶବ୍ଦ ଯୋଗ କରାଯାଇ ବ୍ୟବହୃତ ହୁଏ। ତେଣୁ ଏହି ଶବ୍ଦଗୁଡିକ 'ଉଭୟ ଲିଙ୍ଗ'(neuter gender) ଭାବେ ମୌଖିକରୂପେ ଦରକାର ଅନୁଯାୟୀ ବ୍ୟବାହାର ହୋଇଥାଏ। ଉଦାହରଣ ସ୍ୱରୂପ:

| ମୂଳ ଶବ୍ଦ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ମୂଳ ଶବ୍ଦ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|---|---|
| ଫୁଲ | ଅଣ୍ଡିରା ଫୁଲ | ମାଈ ଫୁଲ | ପିଲା | ପୁଅ ପିଲା | ମାଈ/ଝିଅ ପିଲା |
| ଯାତ୍ରୀ | ପୁରୁଷ ଯାତ୍ରୀ | ମହିଳା/ନାରୀ ଯାତ୍ରୀ | ସନ୍ତାନ | ପୁତ୍ର ସନ୍ତାନ | କନ୍ୟା ସନ୍ତାନ |
| ଚଢ଼େଇ | ବାପା ଚଢ଼େଇ | ମା'ଚଢ଼େଇ | ବାଛୁରୀ | ଅଣ୍ଡିରାବାଛୁରୀ | ମାଈ ବାଛୁରୀ |
| ଭାଲୁ | ଅଣ୍ଡିରା ଭାଲୁ | ମାଈ ଭାଲୁ | ପଶୁ | ଅଣ୍ଡିରା ପଶୁ | ମାଈ ପଶୁ |
| ମୂଷା | ଅଣ୍ଡିରା ମୂଷା | ମାଈ ମୂଷା | କବି | (ପୁରୁଷ) କବି | ମହିଳା/ନାରୀ କବି |

## VI. ଉପସଂହାର

କୌଣସି ଭାଷାତାତ୍ତ୍ୱିକ ଆଲୋଚନାରେ, ଭାଷାର କଥିତ ଓ ଲିଖିତ ଦୁଇଟି ମାଧ୍ୟମ ରୂପେ ବିବେଚନା କରାଯାଏ। ଭାଷାର ଲିଖିତ ରୂପ କଥିତ ରୂପ ଉପରେ ନିର୍ଭରଶୀଳ। ଓଡ଼ିଆ ଭାଷାରେ ବ୍ୟାକରଣ ଗତ ଲିଙ୍ଗ (grammatical gender) ନାହିଁ। କାରଣ ଓଡ଼ିଆ ବାକ୍ୟ ଗଠନରେ କର୍ତ୍ତା ଏବଂ କ୍ରିୟା ମଧ୍ୟରେ କୌଣସି ବୁଝାମଣା ବା ପରିବର୍ତ୍ତନର ପ୍ରଭାବ ନଥାଏ, ଯେପରି ହିନ୍ଦୀରେ ରହିଥାଏ।ପରମ୍ପରାଗତ ଭାବେ, ଓଡ଼ିଆ ଭାଷାଭାଷୀମାନେ ଲେଖିବା ଓ କହିବାର ସୁବିଧା ପାଇଁ ପୁଂଲିଙ୍ଗକୁ ପ୍ରୟୋଜନ ଅନୁସାରେ ସ୍ତ୍ରୀଲିଙ୍ଗକୁ ପରିବର୍ତ୍ତନ କରି ବ୍ୟବହାର କରିଥାନ୍ତି। ସେହିପରି, ବ୍ୟାବହାରିକ ଓଡ଼ିଆରେ କ୍ଲୀବଲିଙ୍ଗ ନାହିଁ। ଓଡ଼ିଆରେ କ୍ଲୀବଲିଙ୍ଗ ଭଳି ଲାଗୁଥିବା ଶବ୍ଦଗୁଡିକ ବାସ୍ତବରେ ପୁଂଲିଙ୍ଗ ରୂପଭାବେ ବ୍ୟବହୃତ ହୁଏ, ଯଥା: *'ପିଲାଟିକୁ ଦିଅ','ପୁଅକୁ ଦିଅ','ଝିଅକୁ ଦିଅ', 'ବହିଟିକୁ ଦିଅ',' କଲମ ଦିଅ',* ଇତ୍ୟାଦି। ଓଡ଼ିଆରେ ଯାହା ଅଛି ତାହା 'ପ୍ରାକୃତିକ ଲିଙ୍ଗ'କୁ (natural gender) ଅନୁସରଣକରି ବ୍ୟବହୃତ ହୋଇଥାଏ। ଏଣୁ ଉପରୋକ୍ତ ଆଲୋଚନାରୁ ଏହାସିଦ୍ଧାନ୍ତ ହୁଏ ଯେ, ଲିଙ୍ଗ ପୃଥକୀକରଣ କେବଳ ଆଭିଧାନିକ ସ୍ତରରେ ସୀମାବଦ୍ଧ ଏବଂ ଏହାର ସାଧାରଣ କଥାବାର୍ତ୍ତାରେ ସେପରି କୌଣସି କଠିନ ଧରାବନ୍ଧା ନିୟମ ଅନୁଶୀଳନ ହୋଇନଥାଏ।

**କୃତଜ୍ଞତା:**ଏହି ପ୍ରବନ୍ଧଟି ଲେଖିଲାବେଳେ ଆଲୋଚନା ମାଧ୍ୟମରେ ମୋତେ ଉଚ୍ଚକୋଟିର ସହାୟକ ଜ୍ଞାନ ଦେଇଥିବା ଭାଷାବିଜ୍ଞାନୀ, ଡ.

ଦେବୀ ପ୍ରସନ୍ନ ପଟ୍ଟନାୟକ ଓ ଡ. ନଟବର ଶତପଥୀଙ୍କ ନିକଟରେ ମୁଁ କୃତଜ୍ଞ।

## ସହାୟକ ସନ୍ଦର୍ଭ ସୂଚୀ


### ଇଂରାଜୀ

[1]. *Census of India*. 2011. *Language: India, States and Union Territories* (Table C-16). New Delhi: Office of the Registrar General, Government of India. (http://censusindia.gov.in/2011Census/C-16_25062018_NEW.pdf).
[2]. Corbett, Greville. 1991. *Gender*. London: CUP.
[3]. Dash, B. N. 2014. Kurmali Noun Inflection: Aspectual Inquiry into Gender and Number. In *International Journal of Linguistics and Literature* (IJLL), 3: 5, Pp. 1-14. DOI: 10.13140/rg.2.1.4993.8004
[4]. Diamond, M. 2000. Sex and Gender: Same or different? In *Feminism and Psychology*, 10: 1, Pp. 46-54. DOI: 10.1177/0959350010001007
[5]. Mahapatra,Bijaya Prasad. 2007. *ASynchronic Grammar of Oriya*.Mysore: CIIL.
[6]. Mohanty, BijayaLaxmi. 1989. *An Intensive Course in Oriya*. Mysore: CIIL.
[7]. Palmer, Frank Robert. 1971. *Grammar* (Language and Linguistics Series). Harmondsworth: Penguin Books.
[8]. Pattanayak, D.P. & Dash, G.N. 1972. *Conversational Oriya* (Odia). Mysore: SulakshanaPattanayak.
[9]. Pattanayak, D. P. &Prusty, S. K. 2015.*Classical Odia in Historical Perspective*. Bhubaneswar: Odisha Sahitya Akademy, Government of Odisha [ISBN: 978-81-7586-198-5].
[10]. Robins, Robert Henry. 1964. *General Linguistics: An Introductory Survey* (Pp. 263-265). London: Longmans.
[11]. Ogilvy, David. 1963. *Confessions of an Advertising Man*. London: Southbank Publishing. (https://www.unc.edu/courses/2006ss2/jomc/170/001/JakeShelton.pdf)
[12]. Ray, Tapas S.2007. "Oriya"(Pp. 485-522). In G. Cardona & D. Jain (Eds.). *The Indo-Aryan Languages*. Routledge.

### ଓଡ଼ିଆ

[13]. ତ୍ରିପାଠି, ପ୍ରଫୁଲ୍ଲ କୁମାର. ୨୦୧୩. *ବ୍ୟାକରଣ କୋଷ*.କଟକ : ଅକ୍ଷର
[14]. ଦାସ୍, ପଣ୍ଡିତ ନୀଳକଣ୍ଠ. ୧୯୩୫.*ଓଡ଼ିଆ ବ୍ୟାକରଣ*.କଟକ : କଟକ ଟ୍ରେଡ଼ିଂ କମ୍ପାନୀ
[15]. ନନ୍ଦଶର୍ମା, ଗୋପୀନାଥ.୧୯୨୭ [୧୯୯୫].*ଓଡ଼ିଆ ଭାଷାତତ୍ତ୍ୱ*. କଟକ: ନିୟୁ ଷ୍ଟୁଡେଣ୍ଟ ଷ୍ଟୋର
[16]. ପ୍ରହରାଜ, ଗୋପାଳଚନ୍ଦ୍ର, ୧୯୧୩-୧୯୪୦.*ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ* (୭ ଖଣ୍ଡ), କଟକ: ଦି ଉତ୍କଳ ସାହିତ୍ୟ ପ୍ରେସ
[17]. ମହାପାତ୍ର, ଧନେଶ୍ୱର.୨୦୧୦. *ଆଧୁନିକ ଓଡ଼ିଆ ବ୍ୟାକରଣ*, କଟକ : କିତାବ ମହଲ୍
[18]. ଶତପଥୀ, ନଟବର. ୨୦୧୫.*ଶବ୍ଦ ସିନ୍ଧୁ*, କଟକ: ଏ. କେ. ମିଶ୍ର ପବ୍ଲିସର୍ସ୍